ପରମ ବୀର ଚକ୍ର ବିଜେତା

# ମେଜର ସୋମନାଥ ଶର୍ମା





## ମେଜର ସୋମନାଥ ଶର୍ମା

୧୯୨୩ ମସିହା ଜାନୁଆରୀ ୩୧ ତାରିଖରେ
ମେଜର ସୋମନାଥ ଶର୍ମା ହିମାଚଳ ପ୍ରଦେଶର କାଙ୍ଗଡ଼ା ଜିଲା ଅନ୍ତର୍ଗତ
ଦାଧ ଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ମେଜର
ଜେନେରାଲ ଅମରନାଥ ଶର୍ମା ଥିଲେ ଜଣେ ସାମରିକ ଅଧିକାରୀ ।
୧୯୪୭ରେ ପାକିସ୍ତାନୀମାନେ କଶ୍ମୀର ଆକ୍ରମଣ କଲାରୁ
ମେଜର ସୋମନାଥ ଶର୍ମା ନିଜ ହାତରେ ପ୍ଲାଷ୍ଟର ଥାଇ ମଧ୍ୟ ସେମାନଙ୍କ ସହ ଯୁଦ୍ଧରେ ସାମିଲ
ହୋଇଥିଲେ । ହାତରେ ପ୍ଲାଷ୍ଟର ଗୁଡ଼ାଇ ସେ ନିଜର
ସୈନ୍ୟଙ୍କୁ ଅସ୍ତ୍ରଶସ୍ତ୍ର ଯୋଗାଇବାରେ ସହାୟତା କରିଥିଲେ ।
'ଆମର ଶେଷ ସୈନିକ ଓ ଶେଷ ରାଉଣ୍ଡ ଗୁଳି ଥିବା ଯାଏ
ମୁଁ ତିଳେ ହେଁ ହଟିବି ନାହିଁ' – ଏହି ବେତାର ବାର୍ତ୍ତା ଥିଲା
ତାଙ୍କର ଅନ୍ତିମ ବାଣୀ, ଯାହା ଭାରତୀୟ ସାମରିକ ଇତିହାସରେ
ଏକ ବିରଳ ଦୃଷ୍ଟାନ୍ତ ହୋଇ ରହିଛି । ଦେଶର ସର୍ବୋଚ୍ଚ
ବୀରତ୍ୱ ସମ୍ମାନ 'ପରମ ବୀର ଚକ୍ର' ଲାଭ କରିବାରେ
ସେ ପ୍ରଥମ ବ୍ୟକ୍ତି ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନତା ଲାଭ କଲା । ଏହାର ଦୁଇମାସ ନପୂରୁଣୁ ଜମ୍ମୁ-କଶ୍ମୀରରେ ଯୁଦ୍ଧର କଳା ବାଦଲ ଦେଖାଦେଲା ।



ଅକ୍ଟୋବର ୨୨ରେ ପାକିସ୍ତାନୀ ସେନା ଓ ଆକ୍ରମଣକାରୀମାନେ ସୀମା ଅତିକ୍ରମ କରି ମୁଜାଫରବାଦ ଦଖଲ କଲେ ।



ତା'ପରେ ସେମାନେ ଉରି ପାୱାର ଷ୍ଟେସନ ଆଡ଼କୁ ଅଗ୍ରସର ହେଲେ ।




ସେମାନେ ପାୱାର ଷ୍ଟେସନଟିକୁ ଧ୍ୱଂସ କରିଦେଲେ ।


ବିଜୁଳି ଯୋଗାଣ ବନ୍ଦ କରିଦେଲେ ।


ଆଃ !
ଆଉ ଯେଉଁମାନେ ତାଙ୍କୁ ବିରୋଧ କଲେ ସେମାନଙ୍କୁ ହତ୍ୟା କଲେ ।

ତିନିଦିନ ଧରି ପାକିସ୍ତାନୀ ସେନା ଲୁଟତରାଜ କଲେ ଏବଂ ଉରି ଓ ବାରମୂଳାରେ ସେମାନଙ୍କୁ ଯେଉଁମାନେ ବାଧାଦେଲେ ସେ ସମସ୍ତଙ୍କୁ ହତ୍ୟା କଲେ ।

ଏହି ଟ୍ରକ୍‌ଗୁଡ଼ିକରେ ସବୁ ଲୁଟ୍‌ମାଲ ବୋଝେଇ କର । ସେଗୁଡ଼ାକୁ ଆମେ ସାଙ୍ଗରେ ନେଇଯିବା । ଯଦି କେହି ମହିଳା ବିରୋଧ କରିବେ ସେମାନଙ୍କୁ ହତ୍ୟା କର ।

ଆଃ !

ଅନେକ ଗାଁରେ ନିଆଁ ଲଗାଇଦେଲେ ।

ରକ୍ଷାକର ...

ଜୀବନ ବଞ୍ଚାଅ, ପଳାଅ !

ଅକ୍ଟୋବର ୨୭ରେ ପ୍ରଥମ ଭାରତୀୟ ଯୁଦ୍ଧବିମାନ ଶ୍ରୀନଗର ଅଭିମୁଖେ ଯାତ୍ରା କଲା । ସୈନିକମାନେ ଓହ୍ଲାଇବା ମାତ୍ରେ ଯଥାଶୀଘ୍ର ଶ୍ରୀନଗର ସହରକୁ ରକ୍ଷା କରିବାରେ ତତ୍ପର ହୋଇଉଠିଲେ ଏବଂ ତା'ପରେ ପାକିସ୍ତାନୀ ସେନା ଓ ସୀମାନ୍ତ ଆକ୍ରମଣକାରୀମାନଙ୍କୁ ଘଉଡ଼ାଇବା ଲାଗି ଭାରତ-ପାକିସ୍ତାନ ସୀମା ଆଡ଼କୁ ଅଗ୍ରସର ହେଲେ ।



ଏହି ସମୟରେ ମେଜର ସୋମନାଥ ଶର୍ମାଙ୍କ '୪ କୁମାଉଁ ରେଜିମେଣ୍ଟ', ବିଭାଜନ ପରବର୍ତ୍ତୀ ଆଭ୍ୟନ୍ତରୀଣ ନିରାପତ୍ତା ନିମନ୍ତେ ଦିଲ୍ଲୀ ଭିତରେ ଓ ଚତୁଃପାର୍ଶ୍ୱରେ ମୁତୟନ ହୋଇଥିଲେ । ତାଙ୍କର 'କୁମାଉଁ ରେଜିମେଣ୍ଟ'ର 'ଡେଲ୍‌ଟା କମ୍ପାନୀ'କୁ ବିମାନ ଯୋଗେ ତୁରନ୍ତ ଶ୍ରୀନଗର ପଠାଇବା ପାଇଁ ନିର୍ଦ୍ଦେଶ ଆସିଲା । କିନ୍ତୁ ସେତେବେଳକୁ ମେଜର ଶର୍ମାଙ୍କ ହାତ ଭାଙ୍ଗିଯାଇଥିଲା ଏବଂ ଭଙ୍ଗାହାତଟି ପ୍ଲାଷ୍ଟର ହୋଇ ବେକରୁ ଝୁଲିରହିଥିଲା ।






ତାଙ୍କର କମାଣ୍ଡିଂ ଅଫିସର ତାଙ୍କ ଉପରେ ଖୁସି ହୋଇଗଲେ ।







ବ୍ୟସ୍ତ ହୁଅ ନାହିଁ ବାହାଦୁର, ମୁଁ ତୁମକୁ ନିରାପଦରେ କ୍ୟାମ୍ପକୁ ନେଇଯିବି ।

ନାଇଁ ସାର୍, ଆପଣ ପାରିବେନି ।




ତାଙ୍କର କମାଣ୍ଡିଂ ଅଫିସର କର୍ନେଲ କେ.ଏସ୍.ଥିମାୟା ତାଙ୍କୁ ଡାକିଲେ ।

କର୍ନେଲ ଥିମାୟା ଖୁସି ହୋଇଗଲେ ଏବଂ ଲେଫ୍ଟେନାଣ୍ଟ ଶର୍ମାଙ୍କୁ ଯଥାର୍ଥରେ 'ମେନ୍ସନ-ଇନ୍-ଡିସ୍ପାଚେସ' ପଦକରେ ସମ୍ମାନିତ କଲେ ।



୧୯୪୭ ମସିହା ଅକ୍ଟୋବର ୩୧ଦିନ ମେଜର ସୋମନାଥ ଶର୍ମା '୪ କୁମାଉଁ'ର 'ଡି-କମ୍ପାନୀ'କୁ ସାଙ୍ଗରେ ନେଇ ବିମାନରେ ଶ୍ରୀନଗର ଅଭିମୁଖେ ଯାତ୍ରା କଲେ ।



ସୈନିକମାନେ ଅବତରଣ କଲା ମାତ୍ରେ, ଯେକୌଣସି ମତେ ବିମାନ ବନ୍ଦରକୁ ସୁରକ୍ଷିତ ରଖିବାର ଦାୟିତ୍ୱ ସେମାନଙ୍କୁ ନ୍ୟସ୍ତ କରାଗଲା ।









*ସାଧାରଣତଃ ମରଣୋତ୍ତର ଭାବେ ପ୍ରଦାନ କରାଯାଉଥିବା ପ୍ରାକ୍-ସ୍ୱାଧୀନ ଭାରତବର୍ଷର ସର୍ବୋଚ୍ଚ ସାହସିକତା ପୁରସ୍କାର ।

ନିଜ ଛାଉଣିରେ ବସି ମେଜର ଶର୍ମା ପକେଟରେ ରଖିଥିବା **ଭଗବତ୍ ଗୀତାକୁ** ସ୍ପର୍ଶ କଲେ । ସେ ମୁରୁକି ହସିଲେ । ସେ ସଦାବେଳେ ଜଣେ ସୈନିକ ହେବାକୁ ଇଚ୍ଛା କରୁଥିଲେ । ତାଙ୍କର ଭାବନା ନିଜର ପିଲାଦିନକୁ ଫେରିଗଲା । ସେହିଦିନମାନଙ୍କରେ ସେ ସବୁବେଳେ ସେନାରେ ଡାକ୍ତର ଥିବା ତାଙ୍କ ବାପାଙ୍କୁ ସଗର୍ବ ଚାହୁଁଥିଲେ ।











ସେ କ୍ରୀଡ଼ା ଓ ପାଠପଢ଼ାରେ ବହୁତ ଭଲ କଲେ ଏବଂ 'ଇଣ୍ଡିଆନ ମିଲିଟାରୀ ଏକାଡେମୀ', ଡେରାଡୁନରେ ଯୋଗଦେଲେ ।




୧୯ବର୍ଷ ବୟସରେ ସେ ଜଣେ ସେନାଧିକାରୀ ଭାବେ ନିଯୁକ୍ତ ହେଲେ ।



ବ୍ରିଗେଡ଼ ମୁଖ୍ୟାଳୟରୁ ଏକ ବାର୍ତ୍ତା ପାଇ ସେ ଚେଇଁ ଉଠିଲେ ।

ସୋମି, ବଡ଼ଗାମ ସୀମାକୁ ଜଗିବା ଓ ସୁରକ୍ଷିତ ରଖିବାର ଦାୟିତ୍ୱ ତୁମ ଉପରେ ନ୍ୟସ୍ତ ହୋଇଛି ।

ଉତ୍ତମ ! ବିମାନଘାଟିର ସୁରକ୍ଷା ନିମନ୍ତେ ତାହା ତ ଅତୀବ ଗୁରୁତ୍ୱପୂର୍ଣ୍ଣ ।

ବିମାନବନ୍ଦରରୁ ବଡ଼ଗାମ ପ୍ରାୟ ପାଞ୍ଚ କିଲୋମିଟର ଦୂର । ଉଚ୍ଚରେ ଅବସ୍ଥିତ ଥିବାରୁ ଏଠାରୁ ବିମାନଘାଟିର ପ୍ରବେଶପଥକୁ ଜଗିବା ସହଜ ହୋଇଥାଏ ।






ନଭେମ୍ବର ୩ରେ '୪ କୁମାଉଁ'ର 'ଆଲ୍‌ଫା ଓ ଡେଲ୍‌ଟା କମ୍ପାନୀ'କୁ ବଡ଼ଗାମ ପଠାଗଲା । କ୍ୟାପ୍‌ଟେନ ରୋନି ଉଡ୍‌ଙ୍କ ଅଧୀନରେ ପରିସ୍ଥିତିର ଆକଳନ ପାଇଁ '୧ ପାରା'ର ଆଉ ଗୋଟେ କମ୍ପାନୀକୁ ପ୍ରେରଣ କରାଗଲା ।




କେତେକ ଗ୍ରାମବାସୀ ନାଳରେ ରହିଛନ୍ତି । ସବୁକିଛି ତ ସ୍ୱାଭାବିକ ଲାଗୁଛି ।


କ୍ୟାପ୍‌ଟେନ ରୋନି ଉଡ୍ ବ୍ରିଗେଡ ମୁଖ୍ୟାଳୟ ସହ ବାର୍ତ୍ତାଳାପ କଲେ ।
ଏବେ ତ ସବୁ କିଛି ଶାନ୍ତ ଜଣାପଡୁଛି । କେବଳ ଯାହା ନାଳରେ କେତେ ଜଣ ଗାଁ ଲୋକ ଅଛନ୍ତି ।


ଠିକ୍ ଅଛି । ତା'ହେଲେ ତୁମେ ମଗାମ ଆଡ଼କୁ ଯାଇ ଶ୍ରୀନଗର ବିମାନଘାଟିକୁ ଫେରିଆସ । ମେଜର ଶର୍ମା ରହିଯା'ନ୍ତୁ ।


ଘଣ୍ଟାଏ ପରେ ମେଜର ସୋମନାଥ ଶର୍ମା ମଧ୍ୟ ସେ ଅଞ୍ଚଳରେ ସେମିତି କିଛି ବଡ଼ ଘଟଣା ନଘଟିଥିବାର ସୂଚନା ଦେଲେ ।
ଏବେ ସୁଦ୍ଧା ତ ସବୁକିଛି ଠିକ୍‌ଠାକ୍ ଅଛି ।


ଠିକ୍ ଅଛି । ଆଲ୍‌ଫା କମ୍ପାନୀକୁ ଫେରାଇ ନିଅ । ତୁମେ ଆଉ ଘଣ୍ଟାଏ ରହିଯାଅ ଏବଂ ତା'ପରେ ଧୀରେଧୀରେ ଫେରିବାକୁ ଆରମ୍ଭ କରିବ ।


ସେଥିପାଇଁ ଶ୍ରୀନଗର ବିମାନଘାଟିକୁ ଅଧିକ ସଂଖ୍ୟକ ସୈନ୍ୟ ଫେରିଆସିଲେ ।


ମେଜର ସୋମନାଥ ଶର୍ମା ଲକ୍ଷ୍ୟ କଲେ ଯେ ଗ୍ରାମବାସୀମାନେ ଏଣେତେଣେ ପଳେଇଯିବା ବଦଳରେ ସେମାନଙ୍କ ରହଣି ସ୍ଥାନର ନିକଟବର୍ତ୍ତୀ ହେଉଛନ୍ତି ।


ଏବଂ ହଠାତ୍ ସେମାନେ ଆକ୍ରମଣ କଲେ ।
ପୋଜିସନ୍ ନିଅ ! ଯେମିତି ପାରୁଛ, ଗୁଳି ଚଳାଅ !
ମାର ... ମାର ...

କିନ୍ତୁ ଏତେବେଳକୁ ସେଠାରେ ପ୍ରାୟ ୭୦୦ରୁ ଅଧିକ ଆକ୍ରମଣକାରୀ ପହଞ୍ଚିସାରିଥିଲେ ଏବଂ ସେମାନଙ୍କ ବିରୋଧରେ ମାତ୍ର ୯୦ଜଣ ଭାରତୀୟ ସୈନ୍ୟ ରହିଥିଲେ । ସୈନିକମାନେ ଅବ୍ୟର୍ଥ ଲକ୍ଷ୍ୟ ନେଇ ଗୁଳିଚାଳନା କଲେ ।






ଭାରତୀୟ ସେନାର ନିର୍ମମ ଓ ନିର୍ଭୁଲ ଗୁଳିଚାଳନାରେ ପାକିସ୍ତାନୀ ଆକ୍ରମଣକାରୀମାନେ ପଛଘୁଞ୍ଚା ଦେଲେ ସିନା, ହେଲେ ଯଥାଶୀଘ୍ର ପୁଣି ଏକତ୍ର ହୋଇ ଅନ୍ୟ ପାର୍ଶ୍ୱରୁ ଆକ୍ରମଣ ଆରମ୍ଭ କରିଦେଲେ ।



ସାର୍, ଆମେ
ମୋର୍ଟାର ଓ
ମେସିନଗନ୍‌ରୁ ପ୍ରଚଣ୍ଡ
ଆକ୍ରମଣର ସାମନା
କରୁଛୁ । ଆମ ଠାରୁ
ସେମାନଙ୍କ ସଂଖ୍ୟା
ଯଥେଷ୍ଟ ବେଶୀ ।

ନିରାପଦରେ ମୋ ଜାଗା
ପର୍ଯ୍ୟନ୍ତ ଚାଲିଆସ ।
ଯେତେ ପାର ଆକ୍ରମଣ
କରି ଚାଲ । ସୁରକ୍ଷିତ ରୁହ ।

କିନ୍ତୁ ସଂଖ୍ୟା ଯଥେଷ୍ଟ କମ୍ ଥିବାରୁ ଓ ଲଗାତର ଅବ୍ୟର୍ଥ ମୋର୍ଟାର ଆକ୍ରମଣ ହେତୁ ସେନାର ଅଗ୍ରଗତି ବାଧାପ୍ରାପ୍ତ ହେଲା ।



ବହୁ ଅସୁବିଧାର ସମ୍ମୁଖୀନ ହୋଇ ମଧ୍ୟ ମେଜର ଶର୍ମା ଓ ତାଙ୍କ ଦଳ ନିଜ ସ୍ଥିତିରେ ଅଟଳ ରହିଲେ । ଏବେ ଶତ୍ରୁସୈନ୍ୟ ତିନିଟି ଭିନ୍ନ ଭିନ୍ନ ପାର୍ଶ୍ୱରୁ ସେମାନଙ୍କ ଉପରକୁ ଗୁଳି ଚାଳନା କରୁଥିଲେ ।




ମେଜର ଶର୍ମା ସେତିକିବେଳେ ବେତାର ମାଧ୍ୟମରେ ଯୋଗାଯୋଗ କଲେ ।
ଆମେ ଭୟଙ୍କର ଆକ୍ରମଣର ସମ୍ମୁଖୀନ ହେଉଛୁ । ମୋର ବାୟୁସେନାର ସହାୟତା ଦରକାର । ପୁଣିଥରେ କହୁଛି ଯେ ମୁଁ ତୁରନ୍ତ ବାୟୁସେନାର ସହଯୋଗ ଲୋଡୁଛି । ଓଭର !


ଅପେକ୍ଷା କର ବନ୍ଧୁ । ମୁଁ ସଙ୍ଗେ ସଙ୍ଗେ ବାୟୁସେନା ପ୍ରେରଣ କରୁଛି । ସଫଳ ହୁଅ । ଆଉଟ୍ !


ତାଙ୍କର ସୈନ୍ୟ ଶତ୍ରୁପକ୍ଷଙ୍କ ଉପରକୁ ଗୁଳିଚାଳନା କରୁଥିଲାବେଳେ ମେଜର ଶର୍ମା ନିଜେ ସୁରକ୍ଷା ଘାଟିରୁ ବାହାରିଆସିଲେ ଏବଂ ଶତ୍ରୁଙ୍କୁ ଆକ୍ରମଣ ପାଇଁ ଭୂମିରେ ପ୍ୟାନେଲ ବିଛାଇ ଯୁଦ୍ଧବିମାନକୁ ସଙ୍କେତ ଦେଲେ ।




ମେଜର ସୋମନାଥ ଶର୍ମା ଯଥାଶୀଘ୍ର ନିଜ ପୋଜିସନ୍‌କୁ ଫେରିଆସିଲେ । କିନ୍ତୁ ତାଙ୍କର ସୈନ୍ୟଙ୍କ ନିକଟରୁ ଗୁଳିଗୋଳା ସରିଆସୁଥିଲା ।





ଗୋଟିଏ ହାତରେ ପ୍ଲାଷ୍ଟର ଥିବା ସତ୍ତ୍ୱେ ମେଜର ଶର୍ମା କେବଳ ଯେ ଶତ୍ରୁଙ୍କ ମେସିନଗନ୍ ଉପରକୁ ଫାୟାରିଂ ପାଇଁ ନିର୍ଦ୍ଦେଶ ଦେଲେ ତା' ନୁହେଁ, ସେ ମଧ୍ୟ ଗୁଳିଗୋଳା ଭରିବାରେ ନିଜ ସୈନ୍ୟଙ୍କୁ ସାହାଯ୍ୟ କଲେ ।



ସେ ମଧ୍ୟ ଅଧିକ ସାମରିକ ସହାୟତା ପାଇଁ ବେତାର ବାର୍ତ୍ତା ପଠାଇଲେ ।







ସେମାନେ କେତେ ସମୟ ନେବେ ?


ତୁମେ ସଂଖ୍ୟାରେ ଯଥେଷ୍ଟ କମ୍ ଅଛ ଏବଂ ତୁମର ଗୁଳିଗୋଳା ବି ସରିଆସିଲାଣି । ଫେରିଆସ । ରିଟ୍ରିଟ ... ପଛକୁ ହଟିଯାଅ ।


କଦାପି ନୁହେଁ ସାର୍ ! ଆମେ ଶେଷ ସୈନ୍ୟ ଓ ଶେଷ ଗୁଳିଥିବାଯାଏ ଲଢ଼େଇ କରିବୁ !!


କ୍ଷତାକ୍ତ ହୋଇ ମଧ୍ୟ ମେଜର ସୋମନାଥ ଶର୍ମା ମାଡ଼ିଆସୁଥିବା ଶତ୍ରୁଙ୍କ ଉପରକୁ ଫାୟାରିଂ ପାଇଁ ନିର୍ଦ୍ଦେଶ ଜାରି ରଖିଲେ ।


ଏହି ସମୟରେ ସୈନ୍ୟ ଆଖିବୁଜା ଗୁଳିଚାଳନା କରୁଥିଲେ । କିନ୍ତୁ ଶତ୍ରୁସୈନ୍ୟ ଓ ଆକ୍ରମଣକାରୀଙ୍କ ତୁଳନାରେ ସେମାନଙ୍କର ସଂଖ୍ୟା ବହୁତ କମ୍ ଥିଲା ।


ଆମର ଆହୁରି ଗୁଳିଗୋଳା ଦରକାର ।


ମେଜର ସୋମନାଥ ଶର୍ମା ଗୋଳାବାକ୍ସ ଆଡ଼କୁ ଦୌଡ଼ିଗଲାବେଳେ ଗୋଟେ ମୋର୍ଟାର ଠିକ୍ ଗୋଳାଭଣ୍ଡାର ଉପରେ ଫୁଟିଲା ଏବଂ କାନଫଟା ଶବ୍ଦ ହେଲା ।






ସେମାନଙ୍କ କମ୍ପାନୀ କମାଣ୍ଡରଙ୍କ ଟଳିପଡ଼ିବା ଦେଖି ସୈନିକମାନେ ଖୁବ୍ ଉତ୍ତ୍ୟକ୍ତ ହୋଇଉଠିଲେ । ବ୍ୟକ୍ତିଗତ ନିରାପତ୍ତାକୁ ବେଖାତିର କରି ସେମାନେ ମାଡ଼ିଆସୁଥିବା ପାକିସ୍ତାନୀ ସେନା ଉପରକୁ ପ୍ରଚଣ୍ଡ ଆକ୍ରମଣ ଜାରି ରଖିଲେ ।




ତାଙ୍କର ବନ୍ଧୁ ଦିୱାନ ସିଂହ ନିଜ ଛାତିରେ ଗୁଳି ବର୍ଷା ହେଲାଯାଏ ମାଡ଼ିଆସୁଥିବା ପାକିସ୍ତାନୀ ସୈନ୍ୟଙ୍କ ସହ ଘମାଘୋଟ ଯୁଦ୍ଧ ଚଳାଇଲେ ।



କିନ୍ତୁ ଏହି ପ୍ରଚଣ୍ଡ ଆକ୍ରମଣ ପାକିସ୍ତାନୀ ସେନାଙ୍କ ପାଲଟା ଆକ୍ରମଣର ଜୁଆରରେ ଭଟ୍ଟା ଆଣିଥିଲା । ପାକିସ୍ତାନୀ ସୈନ୍ୟ ପଳାୟନ କରିବା ସମୟରେ ପ୍ରେରିତ ସୈନ୍ୟ ପହଞ୍ଚିଗଲେ ।



ମେଜର ସୋମନାଥ ଶର୍ମା ନିଜ ଜୀବନକୁ ଉତ୍ସର୍ଗ କରିଦେଲେ । ତାଙ୍କର ଅତୁଳନୀୟ ବୀରତ୍ୱ, ଅପୂର୍ବ ସାହସ ଓ ଅଦମ୍ୟ ଇଚ୍ଛାଶକ୍ତି ସେଦିନ ଶ୍ରୀନଗର ବିମାନବନ୍ଦରକୁ ରକ୍ଷା କରିଥିଲା ।



ଅଧିକ ସୈନ୍ୟଙ୍କୁ ନେଇ ଯୁଦ୍ଧବିମାନ ଅବତରଣ କଲା ଏବଂ ପାକିସ୍ତାନୀ ସୈନ୍ୟଙ୍କୁ ଘଉଡ଼ାଇବାରେ ଲାଗି ପଡ଼ିଲା । ଶ୍ରୀନଗର ରକ୍ଷା ହେଲା ଏବଂ ଉରି ଓ ବାରମୂଳା ସେମାନଙ୍କ ହାତକୁ ଫେରିଆସିଲା ।



ମେଜର ସୋମନାଥ ଶର୍ମାଙ୍କ ବାଣୀ ସତ୍ୟ ପ୍ରମାଣିତ ହେଲା । ତାଙ୍କୁ ମରଣୋତ୍ତର ଭାବେ ରାଷ୍ଟ୍ରର ସର୍ବୋଚ୍ଚ ବୀରତ୍ୱ ସମ୍ମାନ ପ୍ରଥମ 'ପରମ ବୀର ଚକ୍ର'ରେ ସମ୍ମାନିତ କରାଗଲା ।



ସେ ଭଗବତ୍ ଗୀତାର ବାଣୀ ଉପରେ ବିଶ୍ୱାସ ରଖିଥିଲେ ଏବଂ ସେହି ଅନୁସାରେ ଜୀବନ ବଞ୍ଚିଥିଲେ ଓ ଶେଷରେ ମୃତ୍ୟୁବରଣ କଲେ ।



*ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗମ୍*
*ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍,*
*ତସ୍ମାଦୁତ୍ତିଷ୍ଠ କୌନ୍ତେୟ,*
*ଯୁଦ୍ଧାୟ କୃତନିଶ୍ଚୟଃ ।*

(ତୁମେ ଯୁଦ୍ଧରେ ନିହତ ହେଲେ
ସ୍ୱର୍ଗଗାମୀ ହେବ,
ବିଜୟୀ ହେଲେ
ବିଶ୍ୱ-ସାମ୍ରାଜ୍ୟର ଶିରୋମଣି ହେବ,
ତେଣୁ ହେ କୁନ୍ତୀପୁତ୍ର,
ଦୃଢ଼ପ୍ରତିଜ୍ଞ ହୁଅ ଓ ଯୁଦ୍ଧ କର !)



## ୯ ରୁ ୧୨ ବର୍ଷ ବୟସର ପିଲାମାନଙ୍କ ପାଇଁ

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ ପୁସ୍ତକ ଓ ପଠନର ବିକାଶ ନିମନ୍ତେ ୧୯୫୭ ମସିହାରେ ଭାରତ ସରକାର (ଉଚ୍ଚଶିକ୍ଷା ବିଭାଗ, ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ)ଙ୍କ ଦ୍ୱାରା ସ୍ଥାପିତ ଏକ ସ୍ୱୟଂଶାସିତ ସଂସ୍ଥା । ଭାରତରେ ପିଲାମାନଙ୍କ ପାଇଁ ପୁସ୍ତକର ସର୍ବବୃହତ୍ ବହୁଭାଷିକ ପ୍ରକାଶକ ଭାବରେ ଟ୍ରଷ୍ଟ ବିଭିନ୍ନ ବୟସର ପିଲାମାନଙ୍କୁ ସେମାନଙ୍କ ମାତୃଭାଷା ଓ ଇଂରାଜୀରେ ପୁସ୍ତକ ଯୋଗାଇଦେବା ଉଦ୍ଦେଶ୍ୟରେ ଇଂରାଜୀ ସମେତ ୩୦ଟି ଭାରତୀୟ ଭାଷାରେ ସଚିତ୍ର ଓ ରଙ୍ଗିନ ପୁସ୍ତକ ପ୍ରକାଶ କରିଥାଏ ।

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ **ବୀରଗାଥା ପୁସ୍ତକମାଳାର** ପ୍ରକାଶନରେ ସହଯୋଗ ପାଇଁ ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ ଓ ପ୍ରତିରକ୍ଷା ମନ୍ତ୍ରଣାଳୟ ପ୍ରତି କୃତଜ୍ଞତା ପ୍ରକାଶ କରୁଛି ।

ISBN 978-81-237-8100-6

**ରଚନା**

© ଗୌରବ ସି. ସାୱନ୍ତ
ଅନୁବାଦ : ରବୀନ୍ଦ୍ର କୁମାର ନାୟକ

**ଚିତ୍ର ଓ ଗ୍ରାଫିକ୍ସ**

© ଫଜରୁଦ୍ଦୀନ

ପ୍ରସ୍ତୁତ ସଂସ୍କରଣ © ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ପ୍ରଥମ ସଂସ୍କରଣ 2017 (ଶକାବ୍ଦ 1939)
Major Somnath Sharma *(Odia)*
**₹ 45.00**



**ପ୍ରକାଶକ**

ନିର୍ଦ୍ଦେଶକ
ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ
ଭାରତ ସରକାର
ନେହେରୁ ଭବନ
5, ଇନ୍‌ଷ୍ଟିଚ୍ୟୁସନାଲ ଏରିଆ, ଫେଜ୍ – II
ବସନ୍ତକୁଞ୍ଜ, ନୂଆ ଦିଲ୍ଲୀ – 110070
www.nbtindia.gov.in

Printed at: Gopsons Papers Ltd., NOIDA



## ପରମ ବୀର ଚକ୍ର (ପିଭିସି)

ଭାରତୀୟ ସେନାର ସମସ୍ତ ଶାଖାର ପଦାଧିକାରୀ ତଥା ଅନ୍ୟାନ୍ୟ ତାଲିକାଭୁକ୍ତ କର୍ମଚାରୀଙ୍କ ଦ୍ୱାରା ଶତ୍ରୁ ସମକ୍ଷରେ ପ୍ରଦର୍ଶିତ ଅପୂର୍ବ ସାହସିକତା ନିମନ୍ତେ ପ୍ରଦତ୍ତ ସର୍ବୋଚ୍ଚ ବୀରତ୍ୱ ସମ୍ମାନ ।

**୧୯୫୦ ଜାନୁଆରୀ ୨୬ରେ ପ୍ରଚଳିତ**

ଏହି ସମ୍ମାନ ମରଣୋତ୍ତର ଭାବେ ମଧ୍ୟ ପ୍ରଦାନ କରାଯାଇପାରେ ।

ଜଳ, ସ୍ଥଳ ବା ଆକାଶରେ ଶତ୍ରୁ ସମ୍ମୁଖରେ ନିଜର ପ୍ରଚଣ୍ଡ ପରାକ୍ରମ, **ଅସାମାନ୍ୟ ବୀରତ୍ୱ କିମ୍ବା ଆତ୍ମବଳିଦାନର ଶ୍ରେଷ୍ଠ ନିଦର୍ଶନ** ସ୍ୱରୂପ ଏହା ପ୍ରଦାନ କରାଯାଇଥାଏ ।

**୯ରୁ ୧୨ ବର୍ଷ** ବୟସର ପିଲାଙ୍କ ପାଇଁ ଉଦ୍ଦିଷ୍ଟ **ବୀରଗାଥା ପୁସ୍ତକମାଳା**ର ପ୍ରତ୍ୟେକ ସଚିତ୍ର ପୁସ୍ତିକା ସେମାନଙ୍କ ମନରେ ପ୍ରେରଣା ଓ ଦେଶଭକ୍ତିର ଭାବନା ସୃଷ୍ଟି ଉଦ୍ଦେଶ୍ୟରେ ଜଣେ ପରମ ବୀର ଚକ୍ର ବିଜେତାଙ୍କ ମହାନ୍ ବୀରତ୍ୱପୂର୍ଣ୍ଣ କାର୍ଯ୍ୟାବଳୀ ସମ୍ବନ୍ଧରେ ସୂଚନା ଦିଏ ।



nbt.india
एकः सूते सकलम्
ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

